କଥା କେତୋଟି—

# ଆଲୋକ

ଶ୍ରୀ ଗୋଦାବରୀଶ ମହାପାତ୍ର

କଥା କେତୋଟି

# ଆଲୋକ

( ଅବଲମ୍ବନରେ )

ଶ୍ରୀ ଗୋଦାବରୀଶ ମହାପାତ୍ର

ତୃତୀୟ ସଂସ୍କରଣ

ପ୍ରକାଶକ—

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ପ୍ରାଃ ଲିଃ

ବ୍ରହ୍ମପୁର—ଗଞ୍ଜାମ, କଟକ—ବିନୋଦବିହାରୀ

୧୯୫୯

ମୂଲ୍ୟ—[redacted]

# ଆଲୋକ

ଓଡ଼ିଶାର ଜମିଦାରି ମାଲିକ ପ୍ରଜାଙ୍କର ଦୁର୍ଗତି ଆରମ୍ଭ ହେଲା, ୧୮୬୬ ଖ୍ରୀଷ୍ଟାବ୍ଦ ପରେ । ସେହି ବର୍ଷ ଭୀଷଣ ନଅଙ୍କ ଦୁର୍ଭିକ୍ଷ । ତାହାର କେତେ ବର୍ଷ ପୂର୍ବରୁ ଓଡ଼ିଶାର ଜମିଦାରୀସବୁ ପ୍ରବାସୀ, ସ୍ବାର୍ଥାନ୍ୱେଷୀ ବଙ୍ଗାଳୀ କର୍ମଚାରୀଙ୍କ କୂଟ କପଟ କୌଶଳରେ ନାମମାତ୍ର ମୂଲ୍ୟରେ ସେହିମାନଙ୍କ ହାତକୁ ଚାଲିଗଲା । ହଜାର ହଜାର ଟଙ୍କାର ଜମିଦାରି ମାଲିକ ସେମାନେ ସାମାନ୍ୟ ଦଶ ପନ୍ଦର ଟଙ୍କାକୁ ପାଇପାରିଲେ । ଦଶପାଞ୍ଚ ଟଙ୍କାର ସାମାନ୍ୟ କିରାଣୀ ଦଶପନ୍ଦର ହଜାର ଟଙ୍କାର ଜମିଦାରିର ମାଲିକ ହୋଇ ବସିଲେ । ଓଡ଼ିଆ ଜମିଦାରଙ୍କର ନ୍ୟାୟସଙ୍ଗତ ଆପତ୍ତି ବଙ୍ଗାଳୀ କର୍ମଚାରୀଙ୍କ କୌଶଳ ଭେଦ କରି ସରକାରଙ୍କ କାନକୁ ଯାଇ ପାରିଲା ନାହିଁ ।

ଏହି ହଠାତ୍-ଜମିଦାର ବଙ୍ଗାଳୀମାନଙ୍କର ଘର ହେଲା ବଙ୍ଗଳାରେ; ମାତ୍ର ଜମିଦାରି ରହିଲା ସୁଦୂର ଓଡ଼ିଶାରେ । କଲିକତାରେ ଇନ୍ଦ୍ରଭବନରେ ବସି ସେମାନେ ଓଡ଼ିଶାର ଜମିଦାରିକୁ ପରିଚାଳନା କରିବାରେ ଲାଗିଲେ । ସେମାନଙ୍କର ପ୍ରତିନିଧି ରୂପେ ଯେଉଁମାନେ ଏହି ଓଡ଼ିଶାରେ ଜମିଦାରି ଚଳାଇଲେ, ସେମାନେ ମଧ୍ୟ ହେଲେ ବଙ୍ଗାଳୀ ।

ଏହି ହତଭାଗ୍ୟ ଦେଶର ବିଭବ ଯେତେବେଳେ ବଙ୍ଗାଳୀଙ୍କ ହାତରେ ପଡ଼ିଥିଲା, ସେତେବେଳେ ଜମିଦାରି କିଣିଥିବା ବଙ୍ଗାଳୀମାନଙ୍କ ଭିତରେ

ଦୁଇ ଶ୍ରେଣୀର ମାନେଜର ଥିଲେ। ଏକ ଶ୍ରେଣୀର ମାନେଜର ଥିଲେ, ଯେଉଁମାନେ କ ଧର୍ମଗ୍ରୀରୁ—ଚୈତନ୍ୟ ମହାପ୍ରଭୁଙ୍କ ଚଟା କାଟିଥିବାରୁ ସେମାନଙ୍କ ପ୍ରାଣରେ ଏକପ୍ରକାର ପାପପୁଣ୍ୟର ଭୟ ଥିଲା। ତେଣୁ ସେମାନେ ପ୍ରଜାମାନଙ୍କୁ ବେଳେବେଳେ ଦୟା ମାୟା ଦେଖାଉଥିଲେ। କିନ୍ତୁ ଆଉ ଏକ ଶ୍ରେଣୀର ମାନେଜର ଥିଲେ, ସେମାନେ ବଡ଼ ନିଷ୍ଠୁର। ଭଲ ମନ୍ଦ କଣ ସେମାନେ ବିଚାରନ୍ତି ନାହିଁ। ଦୟା ଧର୍ମ କଣ, ସେମାନେ ଜାଣନ୍ତି ନାହିଁ। ପ୍ରଜାଙ୍କୁ ପୀଡ଼ା ଦେଇ କାମ ଆଦାୟ କରିବା ସେମାନଙ୍କର ନିତ୍ୟକର୍ମ କହିଲେ ଚଳେ। ଜମିଦାରମାନେ ଏକେ ତ ନିଷ୍ଠୁର, ପୁଣି ବେଳେବେଳେ ସେମାନେ କଲିକତା ରାଜପ୍ରାସାଦରୁ ଖସି ଖସି ଓଡ଼ିଶା ମଫସଲରେ ପହଞ୍ଚି ଅସମ୍ଭବ ମାତ୍ରାରେ ପ୍ରଜାଙ୍କୁ ଖଟେଇ ଖଟେଇ ମାରନ୍ତି। ତହୁଁ ବଳି ଏହି ମାନେଜର ବା ଉପଜମିଦାରମାନେ ନିଷ୍ଠୁର। ଏମାନଙ୍କ ଅଧୀନରେ କାମ କରିବା କଷ୍ଟକର ବ୍ୟାପାର। କୌଣସି ଜନ୍ମରେ ଏମାନଙ୍କର ପ୍ରଜା ହୋଇ ଜନ୍ମ ହେବା ଅର୍ଥ ଅଭିଶାପ ପାଇବା।

ଏହିପରି ନିଷ୍ଠୁର ପ୍ରକୃତିର ଜଣେ ମାନେଜର, କଟକ ଜିଲାର କୌଣସି ଏକ ବଙ୍ଗାଳୀ ଜମିଦାରି ବୁଝିବା ପାଇଁ କଲିକତାରୁ ନିଯୁକ୍ତି-ପତ୍ର ନେଇ ଆସିଥିଲେ। ପ୍ରଜାମାନଙ୍କୁ ବେଠି ଖଟାଇବା ସେ ସମୟରେ ଜମିଦାରମାନେ ବା ସେମାନଙ୍କର ଅଧୀନସ୍ଥ କର୍ମଚାରୀମାନେ ଏକ ପ୍ରକାର ବିଧିସଙ୍ଗତ ଆଇନ ଭିତରେ ପକାଇବାକୁ ଚେଷ୍ଟା କରୁଥିଲେ। ପ୍ରଜାଙ୍କ ଘରେ ଖାଇବାକୁ ଥାଉ ବା ନଥାଉ, ସେମାନେ ପରିଶ୍ରମକୁ ପାରନ୍ତୁ ବା ନପାରନ୍ତୁ, ସେସବୁ କିଛି ବିଚାର କରାଯାଉ ନ ଥିଲା। ସପ୍ତାହକେ କେତୋଟି ଦିନ ବେଠି ଖଟିବାକୁ ପ୍ରତ୍ୟେକ ପ୍ରଜାଙ୍କୁ ବାଧ କରାଯାଉଥିଲା।

ଏଇଠାରେ ଯେଉଁ ଜମିଦାରି କଥା କୁହାଯାଉଛି, ତାହା ମହାନଦୀ କୂଳର ଏକ ପ୍ରକାଣ୍ଡ ଭୂଭାଗ। ବାରମାସ ସୁନ୍ଦର ଫସଲ ହୁଏ। ସେ ଫସଲ ଦେଖିଲେ ପେଟ ପୂରିଯାଏ। ଜମିଦାରି ଭିତରେ ନଦୀ, ବଣ, ପର୍ବତ କେନାଲର ବ୍ୟବସ୍ଥା ସବୁ ସୁନ୍ଦର ରୂପେ ପ୍ରକୃତି ସଜାଇ ରଖିଥିଲା ପରି ରହିଥିଲା। ଅଗେ ଯେଉଁ ଜମିଦାରିର ପ୍ରଜାଗଣ— ମାଟିର ମଣିଷ ସେହି

ଚାଷିଗଣ ପରମ ସୁଖଶାନ୍ତିରେ ଥିଲେ। ସେମାନଙ୍କ ଦୁର୍ଯୋଗକୁ ଏପଟେ ଏକ ନୂଆ ମ୍ୟାନେଜର ଆସି ହାଜର ହେଲେ ।

ଆସିଲା ମାତ୍ରେ ମ୍ୟାନେଜର ବାବୁ ତାଙ୍କର ଉଗ୍ରମୂର୍ତ୍ତି ଦେଖାଇ-ଦେଲେ। ମ୍ୟାନେଜର ବାବୁଙ୍କ ଘରସଂସାର ବୋଇଲେ ସେ ନିଜେ, ତାଙ୍କର ସ୍ତ୍ରୀ ଏବଂ ଦୁଇଟି ଅବିବାହିତା କନ୍ୟା। ଏହାଛଡ଼ା ଆଉ କାହା ପାଇଁ ତାଙ୍କୁ ଭାବିବାକୁ ପଡ଼େ ନାହିଁ। ତାଙ୍କ ପରିବାର ସିନା ଛୋଟ; ମାତ୍ର ତାଙ୍କ ମନ ଥିଲା ଅତି ବଡ଼। କେଉଁଠି ଟଙ୍କା ଜମା କରିବେ, ମହାଜନ ବୋଲାଇବେ, ଏଥି ସକାଶେ ଅନ୍ୟାୟ ନ ଦେଖି ଯେ କୌଣସି ଉପାୟରେ ଅର୍ଥ-ପିପାସା ମେଣ୍ଟାଇବା ତାଙ୍କର ହେଲା ଲକ୍ଷ୍ୟ। ସପ୍ତାହକେ ପ୍ରଜାଏ ଯେତେ ଦିନ ଖଟିବା କଥା ଆଗରୁ ଚଳି ଆସୁଥିଲା, ତାହାଛଡ଼ା ସେ ଆହୁରି ବେଶି ଖଟାଇବାରେ ଲାଗିଲେ। ବାଳକ, ସ୍ତ୍ରୀ, ପୁରୁଷ—ସେ କାହାକୁ ଛାଡ଼ି ଦେଲେ ନାହିଁ। ଖଟି ଖଟି ପ୍ରାଣ କଣ୍ଠାଗତ ହେଲେ ମଧ୍ୟ ତାଙ୍କ ହାତରୁ କେହି ରକ୍ଷା ପାଇଲେ ନାହିଁ। ନିଜର ସୁବିଧା ପାଇଁ ସେ ଏକ ଇଟା କାରଖାନା ଖୋଲିଲେ, କାଠ ବେପାର ଆରମ୍ଭ କଲେ; ମାତ୍ର ସବୁ ଭଲେ ଏଇ ହତଭାଗା ପ୍ରଜାମାନଙ୍କ ବେଠିରେ ଧରି ଆଣି ।

ପ୍ରଜାଏ ଦୁଃଖ ଆଉ ସହି ପାରିଲେ ନାହିଁ। ଯେତେ ପଶୁ ହେଲେ ମଧ୍ୟ ସେମାନଙ୍କର ତ ତୁଣ୍ଡ ମୁଣ୍ଡ ଥିଲା। ଅତି ଗୋପନରେ ଥରେ କେତେ ଜଣ ଚାଷୀ ମିଶି ଗୋଟିଏ ସଭା କଲେ। ଠିକ୍ ହେଲା, ସମସ୍ତେ ମିଳି ଜମିଦାରଙ୍କ ଆଗରେ ସେମାନଙ୍କର ଦୁଃଖକାହାଣୀ ଜଣାଇବେ। କିନ୍ତୁ ଦରଖାସ୍ତ ଦେଲା ପରେ ସେମାନଙ୍କର ଦୁଃଖ ଆହୁରି ବଢ଼ିଗଲା। ଜମିଦାର ଦୂରରେ ଆରାମରେ ଥାଇ ଏ ଦୁଃଖ କିଛି ବୁଝିଲେ ନାହିଁ। ଦରଖାସ୍ତଟାକୁ ସେହି ମ୍ୟାନେଜରଙ୍କ ପାଖକୁ ଫେରାଇଦେଲେ। ମ୍ୟାନେଜର ବାବୁ ଯେତେବେଳେ ଜାଣିଲେ ଯେ, ପ୍ରଜାଏ ତାଙ୍କ ବିରୁଦ୍ଧରେ ମେଳି କରୁଚନ୍ତି, ତାଙ୍କ ବିରୁଦ୍ଧରେ ଜମିଦାରଙ୍କ ଆଗେ ଜଣାଉଛନ୍ତି, ତାଙ୍କର ଉଗ୍ରମୂର୍ତ୍ତି ଆହୁରି ଭୟଙ୍କର ହୋଇ ଉଠିଲା। ସେ ଏଥିର କଠୋର ପ୍ରତିଶୋଧ ନେଲେ। ଦିନକୁ ଦିନ ପ୍ରଜାଙ୍କର ଦୁଃଖ ଅସହ୍ୟ ହୋଇ ଉଠିଲା ।

ଏଣେ ପ୍ରଜାଙ୍କ ଭିତରେ କଳି ଆରମ୍ଭ ହେଲା । ଇଏ ତା ବିରୁଦ୍ଧରେ, ସେ ୟା ବିରୁଦ୍ଧରେ ମାନେଜରଙ୍କ କାନରେ ଯାଇ ଫୋଡ଼ିଲେ । ଜମିଦାରରେ ଏ କାଣ୍ଡ ଘଟିବାରୁ ଚାଷୀମାନଙ୍କର ଜୀବନ ଆହୁରି ଦୁଃଖପୂର୍ଣ୍ଣ ହେଲା ।

ଏଣେ ମାନେଜରଙ୍କ ନାଁ ଶୁଣିଲେ ପ୍ରଜାଏ ବାଘଭାଲୁଙ୍କୁ ଭୟ କଲା ପରି ଭୟ କଲେ । ଅତ୍ୟାଚାର କ୍ରମେ ବଢ଼ିବାକୁ ଲାଗିଲା । ମାନେଜର ଯେତେବେଳେ ଘୋଡ଼ା ଚଢ଼ି ବା ପାଲିଙ୍କି ଚଢ଼ି ଗାଁ ଭିତରେ ପଶିଯାନ୍ତି, ଗ୍ରାମବାସୀ ଦରିଦ୍ର ପ୍ରଜାଏ ବାଘ ଭାଲୁ ଦେଖି ଭୟ କଲା ପରି ଯେ ଯେଉଁଆଡ଼େ ପ୍ରାଣ ଭୟରେ ଧାଇଁ ପଳାଯାନ୍ତି । କେହି ଜଣେ ହେଲେ ତାଙ୍କ ଆଗରେ ଦେଖାଦେବାକୁ ସାହସ କରନ୍ତି ନାହିଁ ।

ଜମିଦାର ବାବୁ ଏସବୁ କଥା ଦେଖି ଆହୁରି ରାଗିଲେ । ମନେକଲେ, ପ୍ରଜାଏ ତାଙ୍କୁ ଅପମାନ ଦେଉଛନ୍ତି । ସେହି ରାଗରେ ସେ ଲୋକମାନଙ୍କୁ ଆହୁରି ଖଟେଇଲେ । ଚାଷୀମାନେ ଖଟି ଖଟି ଯେତେବେଳେ କ୍ଳାନ୍ତ ହୋଇ ପଡ଼ନ୍ତି, ସେ ନିଜେ ଥାଇ ପଛରୁ ଚାବୁକ ମାରନ୍ତି । ଏ ଦୁଃଖ ସହିବାକୁ ପ୍ରଜାଙ୍କ ଦେହରେ ବଳ ନଥିଲା । କାମ କରି କରି ହାତ ଫାଟି ଯାଏ; କାମ କରି ନ ପାରିଲେ ପିଠି ଫାଟିଯାଏ ।

ଅତ୍ୟାଚାର ଅତି ପ୍ରବଳ ହେଲେ କଥା ଅଛି, ପଶୁଏ ମଧ୍ୟ ସହି ପାରନ୍ତି ନାହିଁ । ଏମାନେ ତ ମନୁଷ୍ୟ, ସହନ୍ତେ କିପରି ? ପ୍ରାଣକୁ ଆଶା ନ ରଖି ସେମାନେ ମାନେଜର ବିରୁଦ୍ଧରେ ବିଚାର କଲେ । କୌଣସି ଏକ ନିର୍ଜନ ସ୍ଥାନରେ ସମସ୍ତେ ଏକାଠି ହେଲେ । ସେହି ଅତ୍ୟାଚାରିତ, ପୀଡ଼ିତ ଚାଷୀମାନଙ୍କ ଭିତରେ ଜଣେ ଅତି ସାହସ ଦେଖାଇ କହିଲେ— "ଆଉ କେତେ କାଳ ଆମେ ପଶୁପରି ଏ ଅତ୍ୟାଚାର ସହିବା ? ସମସ୍ତେ ଏକମେଳ ହୁଅ । ଏକମେଳ ହେଲେ ଏହାର ପ୍ରତିକାର ହେବ । ଏହି ଅତ୍ୟାଚାରକୁ ଚିରକାଳ ପାଇଁ ଲୋପ କରିବାକୁ ହେବ । ଏଭଳି ଲୋକଟାକୁ ଯଦି ମାରି ଦିଆଯାଏ, ଏଥିରେ ଆଦୌ କିଛି ପାପ ହେବ ନାହିଁ !"

ଏହିପରି ଗୁପ୍ତସଭା ପରେ ଥରେ ମ୍ୟାନେଜର ହୁକୁମ ଦେଲେ ଯେ, ପ୍ରଜାମାନେ ବେଠିରେ ଠାଏ ଏକ ଜଙ୍ଗଲ କାଟିବାକୁ ଯିବେ । ଦୋଳ ପୂର୍ଣ୍ଣିମାର ଠିକ୍ ପୂର୍ବରୁ ଏ ହୁକୁମ ଜାରିହେଲା । ବେଠି ଖଟୁଥିବା ଗୃହୀମାନେ ଥରେ ଖଟିବେଲେ ପୁଣି ଏକ ସଭା କଲେ । ସଭାରେ କଥା ଉଠିଲା—"ଏଭଳି ଭାବରେ ଆଉ କେତେ କାଳ କଟେଇବା ? ଏ ଦୁଃଖ କଷ୍ଟ ସହି ସହି ଆମେ ପଶୁ ପରି ହୋଇଗଲେଣି; ଆଉ ସହି ପାରିବା ନାହିଁ । ମ୍ୟାନେଜର ତ ଦିନରାତି ଖଟେଇ ଖଟେଇ ଆମକୁ ମାରିଲା । ଘରର ସ୍ତ୍ରୀଲୋକ ମଧ୍ୟ ବେଠି ଖଟିବାରୁ ଛୁଟି ପାଉନାହାନ୍ତି । ବେଠି ଖଟି ଖଟି ତ ମଲୁ, ତହିଁରେ ପୁଣି ତା ମନ ମୁତାବକ କାର୍ଯ୍ୟଟା ନ ହେଲେ ସେ ପଛରୁ ଦେବ ଚାବୁକ ! କଥା କଥାକେ ମାଡ଼, କଥା କଥାକେ ଧକ୍କା । ଦେଖିଛ ତ, ଯେଉଁଦିନ ମାଗୁଣିଆ ମାଡ଼ ଖାଇ ଖାଇ ମଲା । ତା ପରେ ଏଇ ଯେଉଁ ରଘୁଆ ଟୋକାଟା, କେତେ ମାଡ ସେ ନ ସହିଲା । ଆଗକୁ ଆଉରି କେତେ ମାଡ଼ ଅଛି କେଜାଣି ? ଆମେ କଣ ଏଠି କେବଳ ମାଡ଼ ଖାଇବା ପାଇଁ ଥିବା ? ଏଇତ ରାକ୍ଷସଟା ଏଠିକି ଆସିବ । ସେଟା ତ ମନୁଷ୍ୟ ନୁହେଁ, ଗୋଟାଏ ପଶୁ । ତା ତୁଣ୍ଡକୁ ଯାହା ଆସିବ, ତାହା ଗାଳି ଦେବ । ଆମର ବର୍ତ୍ତମାନ କର୍ତ୍ତବ୍ୟ ହେଉଛି, ରାକ୍ଷସଟା ଯେତେବେଳେ ଘୋଡ଼ା ଚଢ଼ି ଆସିବ, ତାକୁ ଘୋଡ଼ାରୁ ଖସାଇ ଦେବା, ଆଉ ଏ କୁରାଢ଼ିରେ ତା ମୁଣ୍ଡରୁ ଖପୁରି ଖୋଳ କାଢ଼ିଦେବା ! ତାପରେ ସବୁ ଅତ୍ୟାଚାର ସେଇଠାରେ ସରିବ । ତାକୁ ଖଣ୍ଡ ଖଣ୍ଡ କରି କାଟି ନଦୀରେ ନେଇ ଭସାଇଦେବା । ବର୍ତ୍ତମାନ ଆମର କଥା ହେଉଛି, ଆମେ ସମସ୍ତେ ଏ ବିଷୟରେ ଏକମତ ହେବା ଦରକାର, ଏକଜୋଟ୍ ହେବା ଦରକାର । କେହି ଯେପରି ବିଶ୍ୱାସଘାତକତା ନ କରନ୍ତି ! ଏତେବେଳେ ଏକାଠି ନ ହେଲେ ଆଉ ରକ୍ଷା ନାହିଁ ।"

ଏ ବିଷୟରେ ହରି ମଲିକର ବେଶି ଜିଦ୍ ଥିଲା । ତା ଜିଦ୍‌ର କାରଣ ମଧ୍ୟ ଅଛି । ତା ଉପରେ ତାର ବେଶି ରାଗ । ଅନେକ ସମୟରେ ମ୍ୟାନେଜର ବାବୁ ଯେ କେବଳ ଚାବୁକ ଦିଅନ୍ତି, ତା ନୁହେଁ, ତା ସ୍ତ୍ରୀକୁ ନେଇ ତାଙ୍କ ଘରେ ଚାକରାଣୀ କରି ଖଟେଇବାକୁ ତାକୁ ଧମକ ଦିଅନ୍ତି ।

ସେ ନ ମାନିବାରୁ ଥରେ ମାଡ଼ ମଧ ଦେଇଥିଲେ । ଏହିସବୁ କାରଣରୁ ମ୍ୟାନେଜର ଉପରେ ତାର ବେଶି ରାଗ ଥିଲା ।

ପ୍ରଜାଏ ଏହିପରି ଭାବରେ ନାନା ବିଷୟର ପକାଉଥାନ୍ତି, ସନ୍ଧ୍ୟାବେଳକୁ ମାନେଜର ବାବୁ ଆସି ସେଠି ପହଞ୍ଚିଲେ । ଦେଖିଲେ ତାଙ୍କ ମନମୁତାବକ ଜଙ୍ଗଲ ସଫା ହୋଇ ନାହିଁ । ସଙ୍ଗେ ସଙ୍ଗେ ସେ ଅଗ୍ନି ଶର୍ମା ହୋଇ ଉଠିଲେ । ତା ଛଡ଼ା ଜଙ୍ଗଲ ଭିତରର ଗୋଟାଏ ଦରକାରୀ ଗଛ କିଏ କାଟି ପକାଇ ନଈକୂଳକୁ ଗଡ଼ାଇ ଦେଇଥିଲା । ତା ଦେଖି ମାନେଜର ବାବୁ କହିଲେ—"ଏ ଗଛ କାଟିବାକୁ ମୁଁ ତ ମନା କରିଥିଲି, କିଏ ସେ କାଟିଲା କହ ? ନ ହେଲେ ଚାବୁକ ମାରି ପିଠି ଫଟେଇ ଦେବି ।"

ମାନେଜର ବାବୁ ଜଣ ଜଣ କରି, ଥର ଥର କରି ପଚାରିଲେ । ସମସ୍ତଙ୍କ ମନରେ ଆତଙ୍କ ପଶିଗଲା । ସମସ୍ତେ ଭଗିଆ ଆଡ଼କୁ ହାତ ଦେଖାଇଲେ । ମାନେଜର ଘୋଡା ଚାବୁକରେ ଭଗିଆର ମୁହଁକୁ ଦେଖାଇ ଏପରି ମାଡ଼ ଦେଲେ ଯେ, ଦେଖୁ ଦେଖୁ ମୁହଁଟା ରକ୍ତ ବଳବଳ ହୋଇଗଲା । ହରିଆକୁ ମଧ ସେ ଦୁ' ଚାରି ପାହାର ଲଦିଦେଲେ । କାରଣ ସେ ଯାହା କାଠ ଜମାଇଥିଲା, ତାଙ୍କ ଆଖିକି ତାହା ଅତି କମ୍ ଦେଖାଯାଉଥିଲା । ସେହି ମାଡ଼ରେ ହରିଆର ପିଠି ଫାଟିଯାଇଥିଲା । ସେ ଚେତା ହରେଇଲା ପରି ମୁଣ୍ଡରେ ହାତ ଦେଇ ତଳେ ବସି ପଡ଼ିଲା । କହିଲା - "ପ୍ରଭୁ ହେ ! ମୋତେ ମାରିଦିଅ ।"

ଏଣେ ମାନେଜର ବାବୁ ଘୋଡ଼ାରେ ବସି ଚାଲିଗଲେ ।

ସେହିଦିନ ସନ୍ଧ୍ୟାବେଳେ ଚଷାମାନଙ୍କର ଏକ ସଭା ବସିଲା । ସେହି ସଭାରେ ହରିଆ ଠିଆ ହୋଇ ଖୁବ୍ ସାହସର ସହିତ କହିଲା —

"ତୁମେ ସବୁ କ'ଣ ଭଲଆ ମଣିଷ ହେ ? ତୁମକୁ ମଣିଷ ଜନ୍ମ ଦେଲା କିଏ ? ମୁଁ ଦେଖୁଛି, ତୁମେ ମଣିଷ ନୁହଁ; ତୁମେ ସବୁ ଏହି ବଣୁଆ ପକ୍ଷୀ । କହିଲାବେଳେ କହୁଚ କଣ ନା, ସାବଧାନ, ସାବଧାନ, ସତର୍କ ରହ, ସତର୍କ ରହ, ମେଳବାନ୍ଧି ରହ; କିନ୍ତୁ ଯେତେବେଳେ ଠିକ୍ ଘାଟିମୁଣ୍ଡ

ପଡ଼ୁଛୁ, ସେତେବେଳେ ଭୟରେ ଥରହର ହୋଇ ଯାଉଚ । ଠିକ୍ ଡମର ପର ଥରେ ଦଳେ ବଣୁଆ ଚଢ଼େଇ ଗୋଟାଏ ବାଜପକ୍ଷୀ ବିରୁଦ୍ଧରେ ମେଳ ବାନ୍ଧିଥିଲେ । ସେତେବେଳେ ସେମାନେ ମଧ୍ୟ କହୁଥିଲେ—ସାବଧାନ, ସତର୍କ ରହ, ଠିକ୍ ରହ । କିନ୍ତୁ ଯେତେବେଳେ ସତକୁ ସତ ବାଜପକ୍ଷୀ ଆସି ପହଞ୍ଚିଗଲା, ଚଢ଼େଇ ଦଳକ ଯେ ଯେଉଁଆଡ଼େ ଗଛପତ୍ର ଆଢୁଆଳରେ ଲୁଚିଲେ, ଆଉ ବାଜପକ୍ଷୀଟା ତା ମନଖୁସିରେ ଗୋଟାକୁ ମାରି ଉଡ଼ି ଚାଲିଗଲା । ତାପରେ ସବୁ ଚଢ଼େଇ ବୃଦାରୁ ବାହାରି ବାହାରକୁ ଆସିଲେ । ଆପଣା ଭିତରେ ଗଣାଗଣି ହେଲେ । ଦେଖିଲେ, ତାଙ୍କ ଭିତରୁ ଗୋଟିଏ ଊଣା ହୋଇ ଯାଇଛି । କିଏ ନାହିଁ, କିଏ ନାହିଁ ବୋଲି ହୁରି ପଡ଼ିଲା । ଶେଷକୁ ସମସ୍ତେ ବିଚାର କଲେ—'ଓହୋ, ସେହି ଗ୍ରେଟିଆ ଦୁର୍ବଳିଆ ପକ୍ଷୀଟିକି ବାଜ ନେଇ ଯାଇଛି । ରକ୍ଷା ହୋଇଛି, ଆମ ଭିତରୁ କାହାକୁ ନେଇ ନାହିଁ । ଯାହା ବରାଦ୍ ଥିଲା, ତାହା ହୋଇଗଲା । ଆମମାନଙ୍କ ଦୁଷ୍କର୍ମର ଫଳ ସେହି କେବଳ ଭୋଗିଲା ।' ଆମ ଭାଗ୍ୟରେ ବର୍ତ୍ତମାନ ସେହିପରି କଥା ଘଟିଲା । ସମସ୍ତେ କହୁଥିଲ, ସାବଧାନ ରହ, ବିଶ୍ୱାସଘାତକ ହୁଅ ନାହିଁ, ଯେତେବେଳେ ସେ ଭଗିଆର ମୁହଁକୁ ଚିରୁକ ମାଇଲା, ସେତେବେଳେ ତୁମର କଣ କରିବା ଦରକାର ଥିଲା ? ସେତେବେଳେ ତୁମର ସକଳ ମାୟା ମମତା ଛାଡ଼ି, ପ୍ରାଣର ମୋହ ଛାଡ଼ି ତା ଉପରକୁ ଲମ୍ଫ ଦେଇ ତାକୁ ଶେଷ କରିଦେବା ଉଚିତ ନ ଥିଲା କି ? ବାଜପକ୍ଷୀ ଆସିଲା ପରି ସେ ଆସିଲା, ତୁମେସବୁ ଚଢ଼େଇ ଦଳଙ୍କ ପରି ଲୁଚି ପଡ଼ିଲ । ସେ ଆମରି ଭିତରୁ ଗୋଟାକୁ ମାରି ଚାଲିଗଲା । ତୁମେ କେବଳ ବଲବଲ ହୋଇ ଚାହିଁ ରହିଲ ।"

ହରିଆର ଏ ବକ୍ତୃତା ଫଳରେ ସମସ୍ତଙ୍କ ମନରେ ରାଗ ପଶିଲା । ଅନେକ ସମୟ ଏକାଠି ବସି ସେମାନେ ସେହି ବିଷୟରେ ନାନା ଆଲୋଚନା କଲେ । ଶେଷରେ ସିଦ୍ଧାନ୍ତ ହେଲା ଯେ "ଯେକୌଣସି ପ୍ରକାରେ ମାନେଜରଟାକୁ ହତ୍ୟା କରିବାକୁ ହେବ; ନ ହେଲେ ଆଉ ରକ୍ଷା ନାହିଁ ।"

× × ×

ଏହିପରି ଭାବରେ ଅନେକ ଦିନ ଗଲା । ମାନେଜର ତାଙ୍କର ପୂର୍ବ ନୀତି ଅନୁସାରେ କାମ କରାଇବାରେ ଲାଗିଲେ । ଦିନେ ଚାଷୀମାନଙ୍କ ଉପରେ ଏକ ବିଚିତ୍ର ହୁକୁମ ଜାରି ହେଲା । ହୁକୁମରେ ଥିଲା ଯେ, ପୁଣ୍ୟପର୍ବ ଦିନରେ ମଧ ଦରକାର ପଡ଼ିଲେ ଚାଷୀମାନେ ବେଠି ଖଟିବାକୁ ବାଧ ହେବେ । ଏହି ହୁକୁମ୍ ଫଳରେ ଜମିଦାରି ଭିତରେ ଘୋର ଚହଳ ପଡ଼ିଲା । ସମସ୍ତେ ବିଚାରିଲେ, ଏପରି ହୁକୁମ୍ କରିବା ଅର୍ଥ ଆଉ କିଛି ନୁହେ, କେବଳ ଲୋକଙ୍କର ଧର୍ମ ନଷ୍ଟ କରିବା । ଏହିପରି ବିଚାରି ଦିନେ ସବୁ ଚାଷୀ ଠାଏ ଏକଜୋଟ୍ ହୋଇ ଗୋଟିଏ ସଭା କଲେ । ସଭାରେ ବିଚାର କଲେ—

"ସତକୁ ସତ ଯେବେ ଏ ଷଣ୍ଡଟା ପୁଣ୍ୟପର୍ବ ଦିନରେ ଧର୍ମ କର୍ମ ଭୁଲି ଆମକୁ ଗୋରୁଙ୍କ ପରି ବେଠି ଖଟାଇବ, ତାହା ହେଲେ ଏଟାକୁ ମାରିବାରେ କିଛି ହେଲେ ପାପ ଲାଗିବ ନାହିଁ । ତାକୁ ନ ମାରିବା ହେଉଛି, ଆମର ପାପ । ଏ ବିଷୟରେ ଏଣେତେଣେ ହେଲେ ଆଉ ଚଳିବ ନାହିଁ । ଯେ କୌଣସି ପ୍ରକାରେ ତାକୁ ମାରିବାକୁ ହେବ ।"

ଠିକ୍ ଏହିପରି ସମୟରେ ଗୋବିନ୍ଦ ଦାସ ଆସି ସେହିଠାରେ ପହଞ୍ଚିଲା । ଲୋକଟି ଭାରି ଶାନ୍ତଶିଷ୍ଟ । କୌଣସି ଗୋଳମାଳ କଥାରେ ସେ ନ ଥାଏ । ଏ ପର୍ଯ୍ୟନ୍ତ ଚଷାମାନଙ୍କ ଭିତରେ ଯେତେ ଯେତେ ଆଲୋଚନା ହୋଇଥିଲା, ଗୋବିନ୍ଦ ସେସବୁ କୌଣସିଥିରେ ଯୋଗ ଦେଇ ନଥିଲା । ବର୍ତ୍ତମାନ ଏହିସବୁ କଥା ଶୁଣି ସେ କହିଲା—

"ଭାଇମାନେ, ତୁମେ ଏସବୁ କଥା ବିଚାର କରି ଏକ ଘୋର ପାପ କରିବାକୁ ଯାଉଛ । ଜଣେ ଲୋକର ଜୀବନ ନାଶ କରିଦେବା ଅତି ଭୟଙ୍କର କଥା । ମନୁଷ୍ୟକୁ ପ୍ରାଣରେ ମାରିଦେବା ଅତି ସହଜରେ ହୋଇପାରେ; ମାତ୍ର ତୁମର ଲାଭ କଣ ହେବ ? ତୁମେ ଯେ ତାଦ୍ୱାରା କୌଣସି ପୁଣ୍ୟ ଅର୍ଜନ କରିବ ନାହିଁ । ଯଦି ଲୋକଟା ପାପ, ଅନ୍ୟାୟ କରିଥାଏ,

ତାହାହେଲେ ଆପେ ଆପେ ସେ ନାଶ ହୋଇଯିବ । ତୁମ୍ଭମାନଙ୍କର ବର୍ତ୍ତମାନ ଏକମାତ୍ର କର୍ତ୍ତବ୍ୟ ସବୁ ଦୁଃଖ ସହିଯିବା ।”

ଗୋବର୍ଦ୍ଧ ମୁହଁରୁ ଏକଥା ଶୁଣି ହରିଆ ଅଗ୍ନିଶର୍ମା ହୋଇ ଉଠିଲା । ରାଗରେ ଥର ଥର କହିଲା—“ହଁ, ମୁଁ ମାନୁଛି । ତୁମ ମତରେ ମଣିଷକୁ ମାରି ଦେବା ମହାପାପ, ବାସ୍ତବିକ ପାପ; କିନ୍ତୁ ଏ କ୍ଷେତ୍ରରେ ନରହତ୍ୟା କରିବା ଆଦୌ ପାପନୁହେ । ସାଧୁ ଓ ସଜ୍ଜନ ଲୋକଙ୍କୁ ମାରିଲେ ସିନା ପାପ; କିନ୍ତୁ ଏହାପରି ଏକ କୁକୁରକୁ ମାରିଲେ କି ପାପ ? ଏଟାକୁ ମାରିବା ପାଇଁ ଭଗବାନ ଆମ୍ଭଙ୍କୁ ଆଦେଶ ଦେଇଛନ୍ତି । ତା ନ ହେଲେ ମାରିବା ପାଇଁ ଆମ୍ଭର ଇଚ୍ଛା ହୁଅନ୍ତା ନାହିଁ । ତୁମେ ଜାଣିଥିବ, ଦଶଜଣଙ୍କ ଉପକାର ପାଇଁ ଲୋକ ପାଗଳା କୁକୁରକୁ ମାରନ୍ତି । ସେହିପରି ଏ ଲୋକଟା ପରି ପାପୀ ଲୋକକୁ ହତ୍ୟା କରିବା ଅପେକ୍ଷା ହତ୍ୟା ନ କରିବା ମହାପାପ !! ସେ କଣ ଏହିପରି ଭାବରେ ବଳଗନ୍ଧ ଆମ୍ଭଙ୍କୁ ଖଟାଇ ମାରୁଥିବ ? ଯାହାକୁ ହତ୍ୟା କରିବାରେ ଆମ୍ଭଙ୍କୁ ଯଦି ଦୁଃଖ ଭୋଗ କରିବାକୁ ହେବ, ତାହାହେଲେ ସେଥିକି କିଛି ଚିନ୍ତା ନାହିଁ । ଅନ୍ୟ ପାଞ୍ଚ ଲୋକଙ୍କର ସେଥିରେ ଉପକାର ହେବ । ସେମାନେ ଆମ୍ଭଙ୍କୁ ଆଶୀର୍ବାଦ କରିବେ ଏବଂ ସୁଖ-ଶାନ୍ତିରେ ରହିବେ । ଜାଣିଲୁ ଗୋବର୍ଦ୍ଧ, ତୋର ଏକଥାଗୁଡ଼ାକ ନିତାନ୍ତ ବାଜେ ଧରଣର କଥା । ଏ ପୁଣ୍ୟପର୍ବ ଦିନରେ ଦଅଁ ଦର୍ଶନ ଛାଡ଼ି କୁକୁର ପରି ଯାଇ ତା ଦୁଆରେ ଖଟିବା କଣ କମ୍ ପାପ ବୋଲି ମନେ କରୁଛୁ ? ତୁ କଣ ଏପରିଭାବରେ ଯିବାକୁ ଇଚ୍ଛା କରିବୁ ? ନା, ବୋଧହୁଏ କେବେ ନୁହେଁ ।”

ଏ କଥା ଶୁଣି ଗୋବର୍ଦ୍ଧ ଦାସ କହିଲା—“ଯିବ ନାହିଁ କାହିଁକି ? ମତେ ସିଏ ଯେଉଁଠିକି ପଠାଇବ, ଯେଉଁ କାର୍ଯ୍ୟ କରିବାକୁ କହିବ, ମୁଁ ଯିବି ଏବଂ କରିବି । ମୁଁ ଯେଉଁ କାର୍ଯ୍ୟ କରିବି, ତା ମୋ ପାଇଁ ନୁହେଁ । ସେ ପାପ କାହାର, କେବଳ ସେହି ଭଗବାନ ଜାଣନ୍ତି । ସେକଥା ଆମ୍ଭର ବିଚାର କରିବା ଉଚିତ ନୁହେଁ । ଆମ୍ଭର କର୍ତ୍ତବ୍ୟ ହେଉଛି, ବଳା-ବାଡ଼ରେ କାମ କଲାବେଳେ ଆମେ କେବଳ ସେହି ଭଗବାନଙ୍କୁ ଚିନ୍ତା

କରିବା, ତାଙ୍କର କଥା ମନେ ରଖିବା । ତାଛଡ଼ା ଆମ୍ଭେ ଆଉ କିଛି କରିବା ନାହିଁ । ଏ ସବୁ ମୋ ନିଜ କଥା ନୁହେଁ ଭାଇ । ଭଗବାନଙ୍କର ଯଦି ଇଚ୍ଛା ଥାନ୍ତା, ଯଦି ଅନ୍ୟାୟ ଦ୍ୱାରା ଅନ୍ୟାୟକୁ ଘୁଞ୍ଚାଇବାପାଇଁ ସେ ଇଚ୍ଛା କରିଥାନ୍ତେ, ତାହାହେଲେ ସେହି ଭଳିଆ କରି ଗୋଟାଏ ଆଇନ ସେ କରାଇ ଥାଆନ୍ତେ । କିନ୍ତୁ ତାହା କଦାଚ ନୁହେଁ । ଯଦି ଅନ୍ୟାୟ ଦ୍ୱାରା ଅନ୍ୟାୟ ତୁମେ ଘୁଞ୍ଚାଇବ, ତାହାହେଲେ ସେହି ଅନ୍ୟାୟ ପୁଣି ତୁମ ମୁଣ୍ଡ ଉପରେ ଆସି ପଡ଼ିବ ! ମଣିଷର ଶରୀର ସଙ୍ଗେ ଆତ୍ମାର ଏକ ସମ୍ପର୍କ ଅଛି । ତେଣୁ ମନୁଷ୍ୟକୁ ହତ୍ୟା କରିବା ଏକ ଓଲମି । ଯଦି ଅନ୍ୟ ପ୍ରାଣୀକୁ ତୁମେ ନାଶ କରିବାକୁ ଚେଷ୍ଟା କରିବ, ତାହା ଦ୍ୱାରା ତୁମର ଆତ୍ମା କଳୁଷିତ ହେବ ସିନା ! ଯଦି ତୁମେ ମନେ କରୁଛ ଯେ, ଯାହାକୁ ତୁମେ ହତ୍ୟା କଲ, ସେ ଜଣେ ଅସାଧୁ ଲୋକ ଏବଂ ତାକୁ ହତ୍ୟା କରିବା ଦ୍ୱାରା ସଂସାରରୁ ପାପ, ଅନ୍ୟାୟ ତୁମେ ଦୂର କରି ଦେଲ, ତାହାହେଲେ ସକଳ ଅନ୍ୟାୟ ଅପେକ୍ଷା ତୁମର ଏହି କାର୍ଯ୍ୟଟା ଗୁରୁତର ଅନ୍ୟାୟ ହୋଇ ପଡ଼ିବ । ତେଣୁ ଉପଯୁକ୍ତ ଶିକ୍ଷା କର, ସବୁ ସହିବାକୁ ଶିଖ । ତାହା ହେଲେ ଯେତେ ବାଧା ବିପଦ, ଯେତେ ଦୁର୍ଘଟଣା ଆସୁ ପଛକେ ସେସବୁ ତୁମ ବିରୁଦ୍ଧରେ ଠିଆ ହୋଇ ପାରିବ ନାହିଁ, ବରଂ ସବୁ ଘୁଞ୍ଚିଯିବ ।

ଗୋବିନ୍ଦ ଦାସ ମୁହଁରୁ ଏଭଳିଆ କଥା ଶୁଣି ସେ ସଭା ଭିତରେ ଦୁଇ ଦଳ ହୋଇଗଲେ । କେତେକେ ଗୋବିନ୍ଦକୁ ବାହା ବାହା କଲେ, କେତେକେ ହିରିଆ କଥାରେ ତାଳି ମାରିଲେ । ଗୋବିନ୍ଦ ସାଙ୍ଗରେ ଯୋଗ ଦେଇ କେତେକ ମନେ କଲେ ଯେ ସବୁ ସହିଯିବା ଭଲ, ପାପ କରିବା ଅନ୍ୟାୟ । ଆଉ କେତେକେ ମନେ କଲେ, ପାପୀକୁ ନାଶ କରି ସଂସାରରୁ ପାପ ଦୂର କରିବା ଉଚିତ ।

ଯେଉଁଦିନ ପର୍ବ ପଡ଼ିଲା, ସେ ଦିନ ହୋଇଛି ଗୁରୁବାର । ଗୁରୁବାରଟା ଲକ୍ଷ୍ମୀ ଦିବସ । ସେହି ଲକ୍ଷ୍ମୀ ଦିବସରେ କୌଣସି ଚଷା ବିଲବାଡ଼ିକୁ ଗଲେ ନାହିଁ କି ହଳ ବାହିଲେ ନାହିଁ । ସନ୍ଧ୍ୟା ହେଲା । କି ବିପଦ ଆସିବ ବୋଲି ସମସ୍ତେ ଆଶଙ୍କା କଲେ । ଦେଖୁ ଦେଖୁ ମୁହଁ ଅନ୍ଧାର ବେଳକୁ

ମାନେଜରଙ୍କର କେତେ ଜଣ ଲୋକ ଆସି କେତେ ଖଣ୍ଡ ଗାଁରେ କହି ଦେଇଗଲେ ଯେ, କାଲି ସକାଳେ ଜମି ଚାଷ କରାଯିବ; ସମସ୍ତେ ଖୁବ୍ ସକାଳୁ ହଳ ଲଙ୍ଗଳ ଧରି ବିଲରେ ପହଞ୍ଚିବେ ।

ଏହି କଥା କହି କହି ମାନେଜର ବାବୁଙ୍କର ଚାକରମାନେ ବେଠି ଖଟି ଯିବା ଲୋକଙ୍କ ଆଗରେ ଦ୍ୱାରେ ଦ୍ୱାରେ ଖବର ଦେଇ ଆସିଲେ । ସମସ୍ତେ ଘରେ ନ ଥିଲେ । କିଏ ମନଖୁସିରେ ଗୀତ ଗାଇ ଗାଇ ଘରକୁ ଆସୁଥିଲା, କିଏ ବା ନଈ ପୋଖରୀକୁ ଯାଇଥିଲା । ଏ ବାର୍ତ୍ତା ପାଇ ସମସ୍ତେ ବଡ଼ ବ୍ୟସ୍ତ ହୋଇ ପଡ଼ିଲେ । କିନ୍ତୁ ହୁକୁମ୍ ଅମାନ୍ୟ କରିବା ପାଇଁ କାହାର ସାହସ ହେଲା ନାହିଁ । ତା ଆରଦିନ ସକାଳ ହେଲା । ନୀରବରେ ସେମାନେ ବିଲକୁ ଯାଇ ହଳ ଧରି ଚାଷ ଆରମ୍ଭ କଲେ । ଜଗତର ଚାରିଆଡ଼େ ସେଦିନ ଉତ୍ସବ । ସମସ୍ତେ ଖୁସିବାସିରେ ଆନନ୍ଦ ଉତ୍ସବରେ ମାତିଥିଲେ; କିନ୍ତୁ ଏହି ହତଭାଗ୍ୟ ଚାଷୀଗୁଡ଼ିକ ଭାଗ୍ୟ ଆଦେଶ ଶିରକୁ ତାଙ୍କୁ ଦେଖାଇ ଦେଇ ଚାଷ କରିବାରେ ଲାଗିଲେ ।

ସେ ଦିନ ସକାଳେ ମାନେଜର ବାବୁ ଟିକିଏ ବିଳମ୍ବରେ ଉଠିଲେ । ତାପରେ ତେଲ ଲଗାଇ ସ୍ନାନପର୍ବ ସାରି ଭୋଜନ ବ୍ୟବସ୍ଥା କଲେ । ତାପରେ ତାସ ଖେଳ ଆରମ୍ଭ ହେଲା । ତାସ ଖେଳ ବେଳେ ସିଗାରେଟ ଧୂଆଁ ମୁହଁରୁ କାଢ଼ି ସେ ଗୁମାସ୍ତା ବାବୁଙ୍କୁ ଡାକି ପଚାରିଲେ "ଲୋକେ ବିଲରେ ଚାଷ କରୁଛନ୍ତି ତ ?"

"ହଁ ଆଜ୍ଞା, ସେମାନେ ସମସ୍ତେ କାମକୁ ଯାଇଛନ୍ତି । କେଉଁଠାରେ ଚାଷ କରିବାକୁ ହେବ, ମୁଁ ସେମାନଙ୍କୁ କହିଦେଇ ଆସିଛି ।"

"ଭଲ କଥା । ତୁମେ ନିଜେ ଯାଇ ଠିକ୍ କରିଦେଇ ଆସିଛ, ସୁଖର କଥା । କିନ୍ତୁ ମୋର ସନ୍ଦେହ ହୁଏ, ସେମାନେ କଣ ପ୍ରକୃତରେ ଚାଷ କରୁଛନ୍ତି ? ଗଲେ ଭଲ ଦେଖି ଆସିବ, ସେମାନେ କାମ କରୁଛନ୍ତି କି ନାହିଁ । ଯାଅ ତାଙ୍କୁ କହିବ । ମୁଁ ଟିକିଏ ବିଶ୍ରାମ ନେଇ ଯାଉଛି ।

ହଁ, ଆଉ ଗୋଟିଏ କଥା କହିବ । କଟେକେ ଯେପରି ମାଣେ ଲେଖାଏଁ ଜମି ଚାଷ କରନ୍ତି । ଚାଷ ପୁଣି ରୀତିମତ ଚାଷ ହେବା ଦରକାର । ଯଦି ଚାଷ ଖରାପ ଚାଷ ହୋଇଥିବ, ତାହାହେଲେ ଆଜି ପଟଫଟ କିଛି ମାନିବି ନାହିଁ । ସମସ୍ତଙ୍କି ଉପଯୁକ୍ତ ଶାସ୍ତି ଦେଇ ଆସିବି ।”

—‘ଆଚ୍ଛା ଯାଉଛି’ କହି ଗୁମାସ୍ତା ବାବୁ ଘରୁ ଗୋଡ଼ କାଢ଼ୁଛନ୍ତି, ଏପରି ସମୟରେ ମାନେଜର ତାଙ୍କୁ ପଛରୁ ଡାକ ପକାଇଲେ । ସେ ଆସିଲାରୁ ତାଙ୍କୁ କଣ କହିବେ କହିବେ ବୋଲି ବିଚାର କିଛି ତାଙ୍କର ମନେ ପଡ଼ିଲା ନାହିଁ । ଶେଷକୁ କହିଲେ—

“ହଁ, ତମକୁ କ’ଣ କହୁଥିଲି କି ସେଇ ଯେଉଁ ବଦମାସ ଗୁଡ଼ାକ ଚାଷ କରୁଛନ୍ତି, ତାଙ୍କ କଥାବାର୍ତ୍ତା ଟିକିଏ ଶୁଣିବ । ମତେ ସେମାନେ ପଛରେ ଗାଳି ଦେଉଥିବାର ଶୁଣୁଛି । କ’ଣ ବୋଲି ଗାଳି ଦେଉଛନ୍ତି ଶୁଣି ମୋତେ ଆସି କହିବ । ସେ ଠକଗୁଡ଼ାଙ୍କୁ ମୁଁ ଭଲ କରି ଜାଣେ । କୌଣସିମତେ ସେମାନେ କାମ କରିବାକୁ ଚାହାଁନ୍ତି ନାହିଁ । କେବଳ ଛୁଟି ପାଇବେ, ମଦ ଖାଇବେ, ଫୂର୍ତ୍ତି କରିବେ, ପଛରେ ଗାଳି ଦେବେ—ବଦମାସ ଗୁଡ଼ାକ କେବଳ ଏଇ କଥା ଜାଣନ୍ତି । ଏଣେ ଜମି ଚାଷ ହେଲା କି ନ ହେଲା ତାଙ୍କର କିଛି ଯାଏ ଆସେ ନାହିଁ । ତେଣୁ ତୁମେ ଏହିକ୍ଷଣି ଯାଅ । ଶୁଣି ଆସ କଣ କହୁଛନ୍ତି । କିଏ କଣ କହୁଛନ୍ତି, ଚିହ୍ନି କରି ଆସିଥିବ ତା’ପରେ ମୁଁ ଦେଖିବି । ଯାଅ କୌଣସି କଥା ଅଉ ଲୁଚାଇ ରଖିବ ନାହିଁ ।”

ଗୁମାସ୍ତା ତରତର ହୋଇ ଘରୁ ବାହାରି ପଡ଼ିଲା । ଯେତେବେଳେ ବାଲକ ଚାଲିଗଲା, ସେ ଘରେ କେବଳ ରହିଲେ ମାନେଜର ବାବୁ । ଗୁମାସ୍ତା ସଙ୍ଗେ ତାଙ୍କର ଯାହା କଥାବାର୍ତ୍ତା ହୋଇଥିଲା, ମାନେଜରଙ୍କ ସ୍ତ୍ରୀ ପାଖରେ ରହି ସବୁ ଶୁଣୁଥିଲେ । ଗରିବ ଚାଷୀଗୁଡ଼ାକଙ୍କର କଥା ଶୁଣି ତାଙ୍କ ମନ ଦୟା ହେଲା । ତାଙ୍କପାଇଁ ସେ କଣ ଦି’ପଦ କହିବା ଲାଗି ସ୍ୱାମୀଙ୍କ ପାଖରେ ଆସି ପହଞ୍ଚିଲେ । ସେ ଥିଲେ ଖୁବ୍ ସରଳ ପ୍ରକୃତିର ସ୍ତ୍ରୀଲୋକ । ପର

ଦୁଃଖ ଦେଖିଲେ ତାଙ୍କ ହୃଦୟ୍ଭ ତରଳ ଯାଉଥିଲା । ତାଙ୍କୁ ଯେତେବେଳେ ସୁଯୋଗ ମିଳୁଥିଲା, ସେ ସେତେବେଳେ ସ୍ୱାମୀଙ୍କ ପାଖକୁ ଆସି ଗରିବ ସ୍ତ୍ରୀ-ମାନଙ୍କ ପାଇଁ ଓ ସୁପରିପଦ କହୁଥିଲେ । ଗରିବଗୁଡ଼ାକଙ୍କ ଉପରେ ଯେପରି ବେଶି ଅତ୍ୟାଚାର ନ ହୁଏ, ସେଥିପାଇଁ ସେ ସ୍ୱାମୀଙ୍କ କରିଆରେ ଢେର ଚେଷ୍ଟା କରୁଥିଲେ ।

ସେଦିନ ସେ ସ୍ୱାମୀଙ୍କ ପାଖକୁ ଆସି ବଡ଼ ବିନୟ ଭାବରେ କାନ୍ଦି କାନ୍ଦି ହୋଇ କହିଲେ—"ମୋ କଥା ରଖି ଗରିବଗୁଡାକ ପ୍ରତି ଟିକିଏ ଅନୁଗ୍ରହ କର । ଆଜି ଭୋଜି ଭାତ ଦିନ, ପୁଣ୍ୟପର୍ବ ଦିନ । ଆଜି ସେଗୁଡାକୁ ଛୁଟି କରିଦିଅ ।"

ସ୍ତ୍ରୀର କଥା ଶୁଣି ନିଷ୍ଠୁର ସ୍ୱାମୀର ମନ ଆଦୌ ବଦଳିଲା ନାହିଁ । ସେ ସେ କଥାଟାକୁ ହସି ହସି ଉଡାଇ ଦେଲାପରି କହିଲେ— "ଆଜି ଏ କଥା କାହିଁକି କହୁଛ ? ବୋଧହୁଏ ତୁମ ପିଠି ସାଙ୍ଗରେ ସୁବୁଦ୍ଧିର ପରିଚୟ ନାହିଁ । ଏପରି ଅନଧିକାର ଚର୍ଚ୍ଚା କରିବାକୁ କାହିଁକି ସାହସ କରୁଛ ? ତୁମର ତ ଏ ବ୍ୟବସାୟ ନୁହେଁ !"

ସ୍ୱାମୀ ମୁହଁରୁ ଏ କଥା ଶୁଣି ସ୍ତ୍ରୀ କହିଲେ— "କ୍ଷମା ଦିଅ ମୋତେ; ମାତ୍ର ମୋ କଥା ଟିକିଏ ଶୁଣ । କାଲି ରାତିରେ ମୁଁ ଗୋଟାଏ ବଡ଼ ଖରାପ ସ୍ୱପ୍ନ ଦେଖିଲି । ସେତିକିବେଳୁ ମୋ ମନଟା ଥିର ନାହିଁ । ମୋ କଥା ମାନି ଗରିବଗୁଡାକୁ ଅନୁଗ୍ରହ କରି ଛାଡ଼ିଦିଅ ।"

ସ୍ୱାମୀ ରାଗି ଯାଇ କହିଲେ—"ପୁଣି ତୁମେ ସେ ସବୁ କଥା କହୁଛ ! ଏହା ଦ୍ୱାରା ତୁମେ ମାଡ଼ ମୁଲଉଛ ।" ଏହା କହି ରାଗରେ ନିଜର ଖଣ୍ଡିଆ ସିଗାରେଟ ଖଣ୍ଡିକ ତାଙ୍କ ଉପରକୁ ପକାଇଦେଲେ ଓ ଘରୁ ବାହାରିଯିବା ପାଇଁ ହୁକୁମ ଦେଲେ । କହିଲେ—"ଯାଅ ଖାଇବାକୁ ପଠାଇ ଦିଅ ।"

ଖାଇବାକୁ ଅସିଲା । କୋରମା, ମିଠାଇ, ଦୁଧ, ଚିନି ସଙ୍ଗେ ଦୁଇଟି ପାଚିଲା କଦଳୀ ଆସି ଥୁଆ ହେଲା । ମାନେଜର ବାବୁ ବେଶ୍ ଖୁସିବାସିରେ ଖାଇ ବସିଛନ୍ତି, ମଝିରେ ମଝିରେ କାଶୁଛନ୍ତି, ବେଳେ ବେଳେ ଏଣେ

ତେଣେ ଘୂରୁଥାଁଛନ୍ତି, ଏପରି ସମୟରେ ଗୁମାସ୍ତା ବାବୁ ବଲରୁ ଫେରି ଏକ ଲମ୍ବ ଦଣ୍ଡବତ ହୋଇ ଚାଷୀମାନଙ୍କ କଥା ତାଙ୍କ ଆଗରେ କହିବାକୁ ଆରମ୍ଭ କଲେ ।

ମାନେଜର ବାବୁ ପଚାରିଲେ—"ଯାହାର ଯେତକ ଜମି ଚାଷ କରିବାର କଥା, ସେ ସେତକ ଚାଷ କରୁଛନ୍ତି ତ ?"

ଗୁମାସ୍ତା ପଛକୁ ଟିକିଏ ଘୁଞ୍ଚିଯାଇ ଉତ୍ତର ଦେଲା—"ହଁ ଆଜ୍ଞା, ତେବେ ଅଧାଅଧି ଚାଷ ହୋଇଗଲାଣି ।"

"କିଏ ତ କିଛି ଠକୁ ନାହିଁ ?"

"ନା, ମୁଁ ନିଜେ ଦେଖି ଆସିଛି, ଖୁବ୍ ଭଲ ଚାଷ କରିଛନ୍ତି । ସେ ତ ଆପଣଙ୍କୁ ପ୍ରାଣରେ ଭୟ କରୁଛନ୍ତି, ଠକିବେ କିପରି ?"

"ମାଟି ବେଶ୍ ଗୁଣ୍ଡ ହୋଇଛି ?"

"ହଁ, ଖୁବ୍ ଗୁଣ୍ଡ ହୋଇଛି । ଏକବାରେ ଧୂଳି ହୋଇଯାଇଛି !"

ଏହି ଉତ୍ତର ପରେ ମାନେଜର ବାବୁ ଟିକିଏ ନୀରବ ରହିଲେ । କ'ଣ ମନେ ମନେ ଭାବି ପଚାରିଲେ—"ଆଚ୍ଛା, ସେମାନେ ଭଲା ମୋ ସମ୍ବନ୍ଧରେ କ'ଣ କଥାବାର୍ତ୍ତା ହେଉଥିଲେ ? ମୋତେ କଣ ସେମାନେ ଗାଳି ଦେଉଥିଲେ ?"

କ'ଣ ଉତ୍ତର ଦେବାକୁ ହେବ, ଗୁମାସ୍ତା ଟିକିଏ ଆଗପଛ ହୋଇ ଭାବିଲା ପରି ଜଣାପଡ଼ିଲା । ମାନେଜର ତାଙ୍କର ଏ ଅବସ୍ଥା ଦେଖି କହିଲେ—

"ବେଶ୍, କହ, କହ, ସତ କଥା କହ । ଯାହା ଶୁଣିଛ ତାହା କହ । ତୁମ ନିଜ କଥା ତ ତୁମେ କହୁ ନାହଁ, ସେମାନେ ଯାହା କଥାବାର୍ତ୍ତା ହେଉଥିଲେ ତାହା କେବଳ କହିବ । ସତ କଥା କହିଲେ ତୁମକୁ ପୁରସ୍କାର ଦେବ । କିନ୍ତୁ ଯଦି କଥା ଶୁଣି ଲୁଚାଇ ରଖ, ତେବେ ତମ ପ୍ରତି ମୋର

ଦୟା ମାୟା କିଛି ରହିବ ନାହିଁ । ଗ୍ରାହକ ମାଡ଼ରେ ତମର ପିଠି ଫଟାଇ ଦେବ । ଅଚ୍ଛା, ପାଣି ପିଇବ ? ହେଇ ମହାଏ ହରବତ ପିଅ । ଝାଞ୍ଜାଟାରେ ବୁଲି ବୁଲି ଆସିଛ । ତା ପରେ କଣ ହେଲା ?”

ଗ୍ଲାକର ତରତରରେ ଗ୍ଲାସେ ସରବତ୍ ଆଣି ଗୁମାସ୍ତା ହାତକୁ ବଢ଼ାଇ ଦେଲା । ଗୁମାସ୍ତା ଭକ୍ତିନମ୍ର ହୃଦୟରେ ସେତକ ଶେଷ କରିଦେଇ ମନେ ମନେ ଭାବିଲା—“ଲୋକେ ଯେ ୟାଙ୍କୁ ପ୍ରଶଂସା କରୁନାହାନ୍ତି, ଏ ଦୋଷ ତ ମୋର ନୁହେଁ; ଏ ଦୋଷ ହେଉଛି ୟା ନିଜର । ଯେତେବେଳେ ସତ କଥା କହିବାକୁ କହୁଛି, ମୁଁ ଏବେ ସତ କଥା ନ କହି ମିଛ କଥା କହିବ କାହିଁକି ?”

ଏହା ଭାବି ଗୁମାସ୍ତା ଖୁବ୍ ସାହସରେ କହିବାକୁ ଆରମ୍ଭ କଲେ—

“ବାବୁ, ଲୋକେ ଆପଣଙ୍କ ଉପରେ ଭାରି ଅସନ୍ତୁଷ୍ଟ ହେଉଛନ୍ତି ।”

ମାନେଜର୍ ବାବୁ ଧୈର୍ଯ୍ୟ ଧରି ନ ପାରି ପଚାରିଲେ—

“କଣ କହୁଛନ୍ତି କହନା ଆଗ ।”

“ସେମାନେ ସମସ୍ତେ କହୁଛନ୍ତି ଯେ, ଆପଣ ଧର୍ମ ଫର୍ମ କିଛି ମାନନ୍ତି ନାହିଁ ।”

ମାନେଜର ଏ କଥା ଶୁଣି ଠୋ ଠୋ ହସି ଆଗ ଚଳି ପଡ଼ିଲେ । ତାପରେ ପଚାରିଲେ—“ଏକଥା ତାଙ୍କ ଭିତରେ କିଏ କହୁଛି ?”

“ସେମାନେ ସମସ୍ତେ କହୁଛନ୍ତି । ସେମାନେ କହୁଛନ୍ତି ଯେ, ଆପଣ ଭଗବାନଙ୍କୁ ମାନନ୍ତି ନାହିଁ, ବୋଧହୁଏ କୌଣସି ଏକ ସଇତାନକୁ ପୂଜା କରନ୍ତି ।”

ମାନେଜର ବାବୁ ଏକଥା ଶୁଣି ପୁଣି ହସି କହିଲେ—“ଅତି ବଢ଼ିଆ କଥା ଏ ! ଆଚ୍ଛା କହିଲ ଦେଖି, ଅଲଗା ଅଲଗା କରି କିଏ କଣ କହୁଛନ୍ତି ? ଧର ଜଣେ ହରିଆ । ସେ କଣ କହୁଛି ?”

ଗୁମାସ୍ତାଟି ହେଉଛନ୍ତି ସେ ଜମିଦାରୀ ଭିତରର ଲୋକ । ଏ ଗ୍ରାମୀମାନଙ୍କ ଭିତରୁ ଅନେକେ ତାର ପରିଚିତ ବନ୍ଧୁବାନ୍ଧବ ଲୋକ । ସେମାନଙ୍କ ବିଷୟରେ କିଛି କହିବାକୁ ସେ ଇଚ୍ଛା କରି ନ ଥିଲା । ହୁଏତ ସମ୍ଭବତଃ ତାର ଅନେକ ଦିନରୁ ବିବାଦ ଥିଲା । ସେ କହିଲା— "ସମସ୍ତଙ୍କ ଅପେକ୍ଷା ହୁଏତ ତୁମକୁ ବେଶି ଗାଳିଦିଏ ।"

"ଆଚ୍ଛା, ସେ କଣ ବୋଲି ଗାଳିଦିଏ ?"

"ସେ ଗାଳି ନାଁ ଧରିବାକୁ ମୋତେ ଖୁବ ଲାଜ ଲାଗୁଛି । ସେ ଆଶା କରିଛି, ଦିନେ ନା ଦିନେ ଆପଣଙ୍କୁ ଏହି ପାପର ପ୍ରାୟଶ୍ଚିତ୍ତ କରିବାକୁ ହେବ । ଏଥିର ପରିଣାମ ଆପଣଙ୍କୁ ଭୋଗ କରିବାକୁ ହେବ— ଏହିପରି କେତେ କଥା ।"

ମାନେଜର ବାବୁ ଖୁବ୍ ଚଡ଼ା ଗଳାରେ କହିଲେ—"ବାଃ, ସେ ଏ କଥା କହୁଚି ? ସେ ମୋତେ ମାରିବ ନାହିଁ, ମୋ ଦେହରେ ସେ ହାତ ଦେଇପାରିବ ନାହିଁ । ଆଚ୍ଛା, ସେ କୁକୁରଟା ଆଉ କଣ କହୁଥିଲା ?"

"ଆପଣଙ୍କ ନାଁକୁ କେହି ସୁଖ ପାଆନ୍ତି ନାହିଁ । ସମସ୍ତେ ଗାଳି ଦିଅନ୍ତି । ପଛରେ ମାରିବେ ବୋଲି ସମସ୍ତେ କଥାବାର୍ତ୍ତା ହୁଅନ୍ତି ।"

"ଗୋବର ଭଲି କଣ କହେ ? ଯେଉଁମାନେ ଗାଳି ଦିଅନ୍ତି, ସେମାନଙ୍କ ମେଳରେ ଏହି ବୁଢ଼ା ବଦମାସଟା ନିଶ୍ଚେ ଥିବ ।"

"ନା, ନା, ସେ ନାହିଁ ବାବୁ, ସେ ନାହିଁ ।"

"ସେ ଭଲି କଣ କହୁଛି ?"

"ସେ ସମସ୍ତଙ୍କ ଭିତରେ ସେହି କେବଳ କିଛି କହୁ ନାହିଁ । ସେହି ଚଷାଗୁଡ଼ାକ ଭିତରେ ସେ ଗୋଟାଏ ଜଣାଶୁଣା ଲୋକ । ଅନେକ କଥା ସେ ଜାଣେ । ତାକୁ ଦେଖି ଆଜି ମୁଁ ଆଶ୍ଚର୍ଯ୍ୟ ହେଲି ।"

"କାହିଁକି ?"

"ତାର କାର୍ଯ୍ୟ ଦେଖି । ସେ କାର୍ଯ୍ୟ ଦେଖି ଅନ୍ୟ ଲୋକ ମଧ୍ୟ ଆଶ୍ଚର୍ଯ୍ୟ ହେଉଛନ୍ତି ।"

"ସେ କଣ କରୁଥିଲା କି ?"

"ତାହା ଏକ ବିଚିତ୍ର କଥା ! ମୁଁ ସେତେବେଳେ ଯାଇ ତା ପାଖାପାଖି ହେଲି, ଶୁଣିଲି, କିଏ ଜଣେ ଅତି ମଧୁର ସ୍ୱରରେ ଗୀତ ବୋଲୁଥିଲା । ସେ ଗୋବର୍ଦ୍ଧ ଛଡ଼ା ଆଉ କେହି ନୁହେ । ଦେଖିଲି ସେ ହଳ କଲାବେଳେ ତା ପାଖ ହୁଡ଼ରେ ଗୋଟିଏ କଣ ଚକ ଚକ ଜଳୁଥିଲା ।"

"ବାଃ, ସେଇଟା କଣ ନିଆଁ ?"

"ଦୂରରୁ ଦେଖିଲି, ତାହା ଗୋଟିଏ ନିଆଁ ଶିଖା । ପାଖରେ ଯାଇ ପହଞ୍ଚି ଦେଖିଲି, ଗୋଟିଏ ଦୀପ ଜଳୁଛି ।"

"ଦୀପ ! ସେ ଦୀପ ଜାଳି କଣ କହୁଥିଲା ? ମୋତେ କଣ ଗାଳି ଦେଉଥିଲା ?"

"ନା, ନା, ସେ ଗାଳି ଦେଉ ନ ଥିଲା । ସେ ଲକ୍ଷ୍ମୀଠାକୁରାଣୀଙ୍କ ପାଇଁ ଦୀପ ବସାଇଥିଲା । ସେ ବଡ଼ ଧର୍ମବନ୍ତ ଲୋକ । ସବୁବେଳେ ତାର ଧର୍ମରେ ମତି । ଶୁଣିଲି ଭାଗବତରୁ ସେ ପଦେ ପଦେ ଗୀତ ବୋଲୁଥିଲା । ସେ ଖଣ୍ଡିଏ ନୂଆ ଲୁଗା ପିନ୍ଧିଥିଲା । ମୁଣ୍ଡରେ ଏକ ପାଟ ଶାଢ଼ୀ ପଗଡ଼ି ଭିଡ଼ିଥିଲା । ତାହା ଦେଖି ମୋତେ ଭାରି ଖୁସି ଲାଗିଲା ।"

"ତୁମେ ତାକୁ ସେତେବେଳେ କଣ କହିଲ ?"

"ମୁଁ ତାକୁ କିଛି କହିଲି ନାହିଁ । ତା ସାଙ୍ଗ ଲୋକେ ଆସି ତା ପାଖରେ ଠିଆ ହୋଇ ହସୁଥିଲେ । କହୁଥିଲେ, ଆଜି ପର୍ବ ଦିନରେ ଗୋରୁଙ୍କୁ ହଳ ବୁଲାଇବା ଦ୍ୱାରା ଗୋବର୍ଦ୍ଧ ଯେ ପାପ କରୁଛି, ସେଥିପାଇଁ ତାକୁ ଶହେ ବର୍ଷ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ ।"

"ଆଚ୍ଛା, ଏକଥା ଶୁଣି ଗୋବର୍ଦ୍ଧନ ଭଲ କଣ କହିଲା ?"

"ସେ କେବଳ ଏତିକି କହିଲା—'ପୃଥିବୀରେ ଶାନ୍ତି ହେଉ, ସମସ୍ତଙ୍କର ମଙ୍ଗଳ ହେଉ, ଏତିକି ମୋର ଇଚ୍ଛା ।' ଏତିକି କହି ସେ ପୁଣି ଲଙ୍ଗଳ ମୂଠାରେ ହାତ ପକାଇଲା । ପୁଣି ସେ ପଦେ ପଦେ ଗୀତ ବୋଲିଲା—

'ବାଇମନ ରେ !
ଦୂରେ, ବାଜୁଛି ଦୂରେ
କାହା ବଂଶୀ ନାଦ ବ୍ରଜପୁରରେ
ବାଇମନ ରେ !'
ଭୁଲି ଘରଦ୍ୱାର ହୁଅ ଆଗଭର
ତୋ ଲାଗି କାହାର କରୁଣା ଝୁରେ !
ବାଇମନ ରେ !"

ମାନେଜର ବାବୁ ଆଉ କିଛି କହିଲେ ନାହିଁ । ଏକଥା ଶୁଣି ତାଙ୍କ ମୁହଁରୁ ଆଉ ପୂର୍ବପରି ହାସ୍ୟରେଖା ଉଠିଲା ନାହିଁ । ମୁଣ୍ଡକୁ ତଳକୁ ନୁଆଇ ଦେଇ ଗଭୀର ଚିନ୍ତାମଗ୍ନ ଥିଲା ପରି ବସି ରହିଲେ ।

ଗୁମାସ୍ତାଙ୍କୁ ସେ ଘରୁ ଚାଲିଯିବାକୁ ଆଦେଶ ଦେଇ ସେ ଅନେକ ସମୟ ସେପରି ନିଶବ୍ଦରେ ବସି ରହିଲେ । ବସି ବସି ନିଦ ଆସିଲା । ତା ପରେ ଶୋଇବା ଘରକୁ ଯାଇ ଖଟରେ ପଡ଼ିଗଲେ । ବୋଝେଇ ଗାଡ଼ି ଯେପରି ଅତି ଭାର ପାଇଲେ ଚାଲିଲାବେଳେ ଘଡ଼ ଘଡ଼ ଶବ୍ଦ ହୁଏ, ସେହିପରି ସେ କି ଗୁରୁ ଭାର ନିଜ ଉପରେ ବୋଧ କରି ଦୀର୍ଘଶ୍ୱାସ ଛାଡ଼ି ବ୍ୟାକୁଳ ଭାବରେ ଆର୍ତ୍ତନାଦ କଲେ । ସେ ଶବ୍ଦ ଶୁଣି ସ୍ତ୍ରୀ ଆସି ପାଖରେ ପହଞ୍ଚିଲେ । ସେ କେତେ ପ୍ରଶ୍ନ କଲେ ଓ କେତେ ଅନୁନୟ ବିନୟ କରି କହିଲେ; କିନ୍ତୁ ତାଙ୍କ ମୁହଁରୁ କଥା ବାହାରିଲା ନାହିଁ ।

ଶେଷରେ ସେ କୌଣସିମତେ ଧୈର୍ଯ୍ୟ ଧରି ସ୍ତ୍ରୀକୁ କହିଲେ— "ଜାଣିଲ କି, ସେହି ଗୋବର୍ଦ୍ଧା ମୋତେ ଜିଣିଗଲା । ମୁଁ ଏବେ ମୋ କଥା ସବୁ ବୁଝିପାରୁଛି ।"

ତାଙ୍କର ସ୍ତ୍ରୀ ଏକଥା ଶୁଣି ନମ୍ରସ୍ୱରରେ କହିଲେ—"ଯାଅ ତୁମେ, ଏବେ ସେଗୁଡ଼ାକ ଆଉ ଖବରରେ ଖଟାଇ ମାର ନାହିଁ । ଯାହା ତ କରିଛ, କରିଛ; ଏତେବେଳେ ସେ ସବୁ କଥା ଭାବି କ ଲାଭ ? ଏବେ ସେମାନଙ୍କୁ ଛାଡ଼ି ଦେବାକୁ ଭୟ କାହିଁକି ?"

କିନ୍ତୁ ମାନେଜର ସବୁ କଥା ଶୁଣି ଏତିକି ମାତ୍ର କହିଲେ—"ସେହି ଲୋକଟା ମୋତେ ଜିଣିଲା, ସେହି ଲୋକଟା ମୋତେ ଜିଣିଲା ! ମୋ ମନର ବଳକୁ ସେ ଭାଙ୍ଗି ଦେଇଛି । ମୋତେ ସେ ହରାଇ ଦେଇଛି । ତୁମେ ଯାଅ, ତୁମେ ମୋ କଥା ଆଦୌ ବୁଝି ପାରିବ ନାହିଁ ।"

ମାନେଜର ସେହି ଖଟରେ କେବଳ ମୁହଁମାଡ଼ି ରହିଲେ ।

ସକାଳ ହେଲା, ସବୁ ଦିନ ପରି ସେ ନିଜ କାମରେ ବାହାରିଲେ । କିନ୍ତୁ ସେ ଆଉ ପୂର୍ବର ମାନେଜର ନ ଥିଲେ । କି ଘୋର ପରିବର୍ତ୍ତନ ତାଙ୍କ ପ୍ରାଣରେ ଆସିଥିଲା, ମନ ଭିତରେ କୌଣସି ଏକ ଗୁରୁତର ଆଘାତ ପାଇଲା ପରି ଜଣା ପଡ଼ୁଥିଲା । ବେଳେ ବେଳେ ହତାଶ ଭାବରେ ସେ ଅବସନ୍ନ ହୋଇ ପଡ଼ନ୍ତି, ବେଳେ ବେଳେ ତାଙ୍କୁ ମୂର୍ଚ୍ଛା ମଧ୍ୟ ହୋଇଯାଏ । କୌଣସି କାର୍ଯ୍ୟ କରିବାକୁ ତାଙ୍କର ଇଚ୍ଛା ହୁଏ ନାହିଁ । ବେଳେ ବେଳେ ଘର ଭିତରେ ଚଟାରେ ବୁଡ଼ି ସେ ବସି ରହିଲେ । ଆଉ ବେଶି ଦିନ ତାଙ୍କର ସେ ପ୍ରଭୁତ୍ୱ ରହିଲା ନାହିଁ । କଲିକତାରୁ ଜମିଦାର ବାବୁ ଦିନେ ଦିନେ ଆସି ଜମିଦାରିରେ ପହଞ୍ଚିଲେ । ମାନେଜରଙ୍କ ପାଖକୁ ଡକରା ଆସିଲା । ସେଦିନ ସେ ଅସୁସ୍ଥଥିଲେ । ଦେଖା ହୋଇ ପାରିଲା ନାହିଁ । ତା ଆରଦିନ ଡକାଇଲେ । ସେ ଦିନ ମଧ୍ୟ ସେହି ଅବସ୍ଥା ଭୋଗୁଛନ୍ତି । ତେଣୁ ସେ କାର୍ଯ୍ୟରୁ ତାଙ୍କୁ ବରଖାସ୍ତ କରିଦେଲେ । ତଥାପି ସେହି ମାନେଜର ପୂର୍ବ ପରି ଘରେ ବସି ରହିଲେ । ବେଳେ ବେଳେ ଦୁଃଖରେ କାନ୍ଦିଲେ । ଦୁଃଖରୁ ରକ୍ଷା ପାଇବା ପାଇଁ, ପୂର୍ବକୃତ ପାପକୁ ପାସୋରିବା ପାଇଁ, ସେ ଆଉ କୌଣସି ଉପାୟ ନ ଦେଖି ମଦ ଖାଇ ତାହା ଭୁଲିଯିବାକୁ ଚେଷ୍ଟା କଲେ । ତାଙ୍କର ଅବସ୍ଥା ଏତେ ଖରାପ ହୋଇଗଲା ଯେ ଶେଷରେ ସେହି

ସେମାନେ ତାଙ୍କୁ ଦୟା ଦେଖାଇଲେ । ନିଶ୍ଚୟ ଗୋବର ସେଦିନ ହୃଦ୍‌ରେ ଯେଉଁ ଧର୍ମର ଦୀପ ଜଳାଇଥିଲା, ସେହି ଦୀପର ଆଲୋକରେ ତାଙ୍କର ପ୍ରାଣ-ମନ୍ଦିର ଆଲୋକିତ ହୋଇଗଲା । ନିଜ ଭିତରର ପାପ ସେ ଗୋଟି ଗୋଟି ଦେଖିପାରିଲେ । ସେ ପାପକୁ ଆଉ ଥରେ ନ ଦେଖିବା ପାଇଁ, ସେଥିରୁ ଉଦ୍ଧାର ପାଇବା ପାଇଁ ସେ କେବଳ ମଦ ଖାଇ-ମଲେ ।

ଶେଷ ବେଳକୁ ଆଲୋକକୁ ଦେଖିବାକୁ ତାଙ୍କୁ ଭୟ ଲାଗିଲା—କାଳେ ତାଙ୍କର ପାପ ତାଙ୍କ ପାଖକୁ ଭୟଙ୍କର ବେଶରେ ମାଡ଼ି ଆସିବ ପରା !

—ସମାପ୍ତ—

ମୁଦ୍ରାକର—ଶ୍ରୀ କିଶୋରଚନ୍ଦ୍ର ମିଶ୍ର, କବିତା ପ୍ରେସ, କଟକ-୧

